ବିଜ୍ଞାନ-ଆବିଷ୍କାର ସିରିଜ୍



ବୈଜ୍ଞାନିକ

# ସାମନ୍ତ ଚନ୍ଦ୍ରଶେଖର



Digitized by srujanika@gmail.com




# ସାମନ୍ତ ଚନ୍ଦ୍ରଶେଖର

(୧୮୩୫—୧୯୦୪)

ଅଧ୍ୟାପକ ଦେବକାନ୍ତ ମିଶ୍ର, ଏମ୍., ଏସ୍‌ସି.,
ରେଭେନ୍ସା କଲେଜ, କଟକ-୩

ଜନପ୍ରିୟ ପୁସ୍ତକାଳୟ
ବିନୋଦବିହାରୀ, କଟକ-୨

Digitized by srujanika@gmail.com

ପୁନର୍ମୁଦ୍ରଣ, ଜାନୁୟାରୀ—୧୯୯୨

© ଜନଶକ୍ତି ପୁସ୍ତକାଳୟ, କଟକ-୨

ମୂଲ୍ୟ : ଟ ୩-୦୦
(ଜନଶକ୍ତି ପୁସ୍ତକାଳୟ)

ଜନଶକ୍ତି ପୁସ୍ତକାଳୟ, ବିନୋଦବିହାରୀ, କଟକ-୨ଙ୍କ ତରଫରୁ ଏନ୍. ଏଲ୍. ଗୁପ୍ତଙ୍କ ଦ୍ୱାରା ପ୍ରକାଶିତ ଓ ମା' ମଙ୍ଗଳା ପ୍ରିଣ୍ଟିଂ ପ୍ରେସ୍‌ଙ୍କ ଦ୍ୱାରା କଟକ-୨ରେ ମୁଦ୍ରିତ ।

Digitized by srujanika@gmail.com

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶା ରାଜ୍ୟରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାକୁ ଜନସାଧାରଣଙ୍କ ସାମୂହିକ କଲ୍ୟାଣ ନିମନ୍ତେ ନିୟୋଜିତ କରିବାକୁ କେହି ଆଗ୍ରହୀ ହୋଇ ନ ଥିଲେ । ପଡ଼ୋଶୀ ରାଜ୍ୟଗୁଡ଼ିକ ତୁଳନାରେ ଏହି ଅଭାବୀ ମୁଲକରେ ବିଜ୍ଞାନ ଶିକ୍ଷା ବା ବୈଜ୍ଞାନିକ ଗବେଷଣା ପାଇଁ କୌଣସି କାର୍ଯ୍ୟାନୁଷ୍ଠାନ ଗୃହୀତ ହୋଇ ନ ଥିଲା । ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ ଓ ଅବହେଳିତ ରାଜ୍ୟରେ ପାଶ୍ଚାତ୍ୟ ଢାଞ୍ଚାରେ ବିଜ୍ଞାନ ଶିକ୍ଷାପାଇଁ କୌଣସି ଉଚ୍ଚକୋଟୀର ଶିକ୍ଷାନୁଷ୍ଠାନ ମଧ୍ୟ ପ୍ରତିଷ୍ଠିତ ହୋଇ-ନ ଥିଲା । ସହରାଞ୍ଚଳର ମୁଷ୍ଟିମେୟ ବ୍ୟକ୍ତି ଇଂରାଜୀ ଭାଷା ଶିକ୍ଷା କରିଥିଲେ କେବଳ ସରକାରୀ ଚାକିରି ପାଇବା ଆଶାରେ । ଏ ରାଜ୍ୟର ଗୋଟିଏ ଅଞ୍ଚଳରୁ ଆଉ ଗୋଟିଏ ଅଞ୍ଚଳକୁ ଯାତାୟାତ କରିବା ପାଇଁ ଯାନବାହାନର ମଧ୍ୟ କୌଣସି ସୁବିଧା ନ ଥିଲା । ବୈଜ୍ଞାନିକ ଗବେଷଣାକୁ ମାନସିକ ବିଳାସ ରୂପେ ବିଚାର କରିବା ପାଇଁ ମଧ୍ୟ ଜନସାଧାରଣ ଚିନ୍ତା କରି ନ ଥିଲେ । ଏପରି ପରି-ସ୍ଥିତିରେ ସହରାଞ୍ଚଳଠାରୁ ବହୁ ଦୂରରେ ଥିବା ଗୋଟିଏ ପଲ୍ଲୀ-ଗ୍ରାମରେ ଇଂରାଜୀ ଭାଷା ଅନଭିଜ୍ଞ ଜଣେ ସଂସ୍କୃତ ପଣ୍ଡିତ ଯେ କିପରି ଜ୍ୟୋତିର୍ବିଜ୍ଞାନର ସମୃଦ୍ଧି ସାଧନ ପାଇଁ ସାହସିକ ପଦକ୍ଷେପ ଗ୍ରହଣ କରିପାରିଲେ, ସେକଥା ଚିନ୍ତାକଲାବେଳକୁ ଆମେ ବିସ୍ମିତ ହୋଇଯାଉଛୁ । ଓଜସ୍ୱିନୀ, ପ୍ରଜ୍ଞାସମ୍ପନ୍ନ ଏବଂ ମହାମତି ବୈଜ୍ଞାନିକ ଆତ୍ମନିବିଷ୍ଟ ଭାବରେ ତଥା କଠୋର ସାଧନା ବଳରେ ଜ୍ୟୋତିର୍ବିଜ୍ଞାନର ସମୃଦ୍ଧିସାଧନ କଲେ ଯେଉଁ ମହନୀୟ ଅବଦାନ ଯୋଗାଇପାରିଥିଲେ, ତାହା ତତ୍କାଳୀନ ବ୍ରିଟିଶ ସରକାରଙ୍କ

Digitized by srujanika@gmail.com

ସମ୍ମେନ୍ଦ୍ର ଦୃଷ୍ଟି ଆକର୍ଷଣ କରିପାରିଥିଲା । ବିଚକ୍ଷଣ କର୍ମକୁଶଳତା ବିନମ୍ରସ୍ୱରେ ନିଜ ହାତରେ ଅତି ସରଳ କର୍ମନିପୁଣ ଯନ୍ତ୍ରଗୁଡ଼ିକୁ ନିର୍ମାଣ କରି ସେ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଯେଉଁ ତଥ୍ୟଗୁଡ଼ିକୁ ସଂଗ୍ରହ କରିଥିଲେ, ସେଗୁଡ଼ିକୁ ସେ ସଂସ୍କୃତ ଭାଷାରେ ଶ୍ଲୋକ ଆକାରରେ 'ସିଦ୍ଧାନ୍ତ ଦର୍ପଣ' ଶୀର୍ଷକ ଗୋଟିଏ ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ଜ୍ୟୋତିଷମାନଙ୍କର ଗତିବିଧି ଚନ୍ଦ୍ରଗ୍ରହଣ ସୂର୍ଯ୍ୟ-ପରାଗ, ବିଭିନ୍ନ ସୁଉଚ୍ଚ ପର୍ବତଗୁଡ଼ିକର ଉଚ୍ଚତା ପ୍ରଭୃତି ସମ୍ବନ୍ଧରେ ସେ ସ୍ୱକର୍ତ୍ତୃକ ଯନ୍ତ୍ରଗୁଡ଼ିକ ସାହାଯ୍ୟରେ ଯେପରି ନିର୍ଭୁଲ ଗଣନା କରିଥିଲେ ଏବଂ ସ୍ୱୀୟ ମତବାଦ ସପକ୍ଷରେ ପ୍ରାମାଣିକ ତଥ୍ୟ ସଂଗ୍ରହ କରିବା ପାଇଁ ବସ୍ତୁବାଦୀ ଦୃଷ୍ଟିକୋଣରୁ ଅଧିହିଯ୍ୟାତ୍ମକ ଗବେଷଣା ପ୍ରତି ଯେପରି ଗୁରୁତ୍ୱ ଆରୋପ କରିଥିଲେ ତାହା ଆଜି ଆମକୁ ବିସ୍ମୟାଭିଭୂତ କରୁଛି । ବୈଜ୍ଞାନିକ ଗବେଷଣାରେ ଏପରି ପାରଦର୍ଶିତା ପ୍ରଦର୍ଶନ କରିଥିବାରୁ ତତ୍କାଳୀନ ଗୁଣମୁଗ୍ଧ ବ୍ରିଟିଶ ସରକାର ତାଙ୍କୁ ଯେଉଁ ସମ୍ମାନସୂଚକ 'ସନନ୍ଦ' ଦ୍ୱାରା ଅଭିନନ୍ଦନ ଜ୍ଞାପନ କରିଥିଲେ, ତାର ନକଲ ନିମ୍ନରେ ପ୍ରଦତ୍ତ ହୋଇଛି ।

## SANAD

Pandit Samanta Chandra Sekhar Sinha Hari Chandan Mahapatra Samanta of the Tributary State of Khandpara in Orissa.

I hereby confer upon you the title of Mahamahopadhyaya as a personal distinction.

The 3rd June, 1893

Viceroy and
Governor General of India

Digitized by srujanika@gmail.com

ମୃତ୍ୟୁ ପୂର୍ବରୁ ଦୂରବୀକ୍ଷଣ ଯନ୍ତ୍ରଟିଏ ସ୍ୱଚକ୍ଷୁରେ ଦେଖିବାର ସୌଭାଗ୍ୟ ଅର୍ଜନ କରି ନ ଥିବା ତଥା ଇଂରାଜୀ ଭାଷାରେ ଆଦୌ ଜ୍ଞାନ ଅର୍ଜନ କରି ନ ଥିବା ଏହି ଯୋଗଜନ୍ମା କର୍ମକୁଶଳୀ ବୈଜ୍ଞାନିକ ନିଜ କୌତୁହଳର ଅବଦମନ ପାଇଁ ଗଭୀର ଆତ୍ମ-ଅବବୋଧ, ଉଚ୍ଚ ଚିନ୍ତାଶକ୍ତି, ବିଚକ୍ଷଣ କର୍ମକୁଶଳତା ତଥା କଠୋର ଅଧ୍ୟବସାୟ ବଳରେ ଯେପରି ପ୍ରତିକୂଳ ପରିବେଶରେ ବୈଜ୍ଞାନିକ ଗବେଷଣାକୁ ଜୀବନର ବ୍ରତ ରୂପେ ଆଦରି ନେଇଥିଲେ, ତତ୍‌ସମ୍ବନ୍ଧୀୟ ବିବରଣୀ ପାଠ କରିବା ଦ୍ୱାରା ଆମେ ଜାଣିପାରିବା ଯେ ବୁଦ୍ଧିବଳରେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ; ବିପୁଳ ଅର୍ଥ ଓ ବହୁ ଆଡ଼ମ୍ବର ଉପରେ ଆଦୌ ନିର୍ଭର ନ କରି ମଧ୍ୟ ସେ ଜ୍ଞାନଭଣ୍ଡାର ପରିପୁଷ୍ଟି ପାଇଁ ନିଜସ୍ୱ ଅବଦାନ ଯୋଗାଇପାରେ । ଓଡ଼ିଶା ରାଜ୍ୟର କୃତବିଦ୍ୟ ପଣ୍ଡିତ ପ୍ରବର ଚନ୍ଦ୍ରଶେଖର ସିଂହଙ୍କ ଜୀବନାଦର୍ଶକୁ ଅନୁକରଣ କରିବା ଦ୍ୱାରା ଆମେ ଆମ ପ୍ରତିଭାର ସଦୁପଯୋଗ କରିବା ପାଇଁ ଅଶେଷ ପ୍ରେରଣା ପାଇପାରିବା ।

## ବାଲ୍ୟଜୀବନ ଓ ଶିକ୍ଷାଗତ ଯୋଗ୍ୟତା—

ଭାରତୀୟ ଜ୍ୟୋତିର୍ବିଜ୍ଞାନର ଅନ୍ୟତମ ଉଦ୍‌ଗାତା ସାମନ୍ତ ଚନ୍ଦ୍ରଶେଖର ୧୮୩୫ ମସିହା ମାର୍ଗଶିର କୃଷ୍ଣ ଅଷ୍ଟମୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ଧରାକୋଟ ରାଜଜେମା ବିଷ୍ଣୁମାଳୀ ଓ ଖଣ୍ଡପଡ଼ା ରାଜାଙ୍କ ଖୁଲ୍ଲତାତ ଶ୍ୟାମବନ୍ଧୁ ସିଂହଙ୍କ ଔରସରୁ ସେ ଭୂମିଷ୍ଠ ହୋଇଥିଲେ । ସେତେବେଳକୁ ନଟବର ସିଂହ ଖଣ୍ଡପଡ଼ାର ରାଜା ରୂପେ ରାଜୁତି କରୁଥିଲେ । ତାଙ୍କ ପିତା ଶ୍ୟାମବନ୍ଧୁ ଜଣେ ଅସାଧାରଣ ପଣ୍ଡିତ ଥିଲେ । ସେ ସଂସ୍କୃତ କାବ୍ୟ, ନାଟକ, ବ୍ୟାକରଣ, ସ୍ମୃତିଶାସ୍ତ୍ର, ଗଣିତଶାସ୍ତ୍ର, ଭକ୍ତିଗ୍ରନ୍ଥ ଓ ଗୋସ୍ୱାମୀମାନଙ୍କର

Digitized by srujanika@gmail.com

ଗ୍ରନ୍ଥ ଚର୍ଚ୍ଚା କରୁଥିଲେ । ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବାକୁ ମଧ୍ୟ ସେ ଆଗ୍ରହୀ ହୋଇଥିଲେ । ପିତା ଶ୍ୟାମବନ୍ଧୁ ପୁତ୍ରକୁ ପ୍ରାଚୀନ ତାଳପତ୍ର ପୋଥିରୁ ସଂସ୍କୃତ ସାହିତ୍ୟ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଧ୍ୟୟନ କରିବା ପାଇଁ ପ୍ରେରଣା ଯୋଗାଇଥିଲେ । ତାଙ୍କୁ ଯେତେବେଳେ ମାତ୍ର ୧୫ ବର୍ଷ ବୟସ, ସେତେବେଳକୁ ସେ ରଘୁବଂଶ, ମେଘଦୂତ, ଶିଶୁପାଳବଧ, ନୈଷଧ, କିରାତାର୍ଜ୍ଜୁନୀୟ, ବିଦଗ୍ଧମାଧବ, ମହାନାଟକ, ଶ୍ରୀମଦ୍‌ଭାଗବତ ପ୍ରଭୃତି ଗ୍ରନ୍ଥ ଅଧ୍ୟୟନ ଓ ଆଲୋଚନା କରିସାରିଥିଲେ । ସେ ଖୁବ୍ ଅଳ୍ପ ବର୍ଷ ବୟସରେ ସ୍ୱମାତୃଭାଷା ଓଡ଼ିଆ ଓ ପ୍ରାଚ୍ୟବିଦ୍ୟା ସଂସ୍କୃତ ଭାଷାରେ ଅସାମାନ୍ୟ ବ୍ୟୁତ୍ପତ୍ତି ଲଭ କରିଥିଲେ । ଏଥିରେ ତାଙ୍କ ଶିକ୍ଷାଗୁରୁ ଶ୍ରୀ ଆନନ୍ଦ ଖଡ଼୍ଗ ରାୟ ତଥା ଇଟାପୁରନିବାସୀ ତଦୀୟ ଦୀକ୍ଷାଗୁରୁ ପଣ୍ଡିତ ଶ୍ରୀ ମଧୁସୂଦନ ମହାପାତ୍ରଙ୍କ ସାନ୍ନିଧ୍ୟ ଓ ସମୟୋଚିତ ଉପଦେଶର ଅବଦାନ ଅବଶ୍ୟ ସ୍ମରଣୀୟ । ସାମନ୍ତ ଚନ୍ଦ୍ରଶେଖର ଥିଲେ କାବ୍ୟରସିକ । ସେ ଅଳ୍ପ ବୟସରୁ ମନୋଜ୍ଞ ଭାବଗମ୍ଭୀର ଶ୍ଳୋକାବଳୀ ରଚନା କରି ନିଜ ଗୁରୁଜନମାନଙ୍କୁ ଚମତ୍କୃତ କରିଦେଉଥିଲେ । ସାମନ୍ତଙ୍କ ଶୁଭେଚ୍ଛୁମାନେ ତାଙ୍କୁ ଉଚ୍ଚତର ବିଜ୍ଞାନ ଶିକ୍ଷାଦେବା ଲାଗି ଶ୍ୟାମବନ୍ଧୁଙ୍କୁ ପରାମର୍ଶ ଦେଇଥିଲେ । ଶ୍ୟାମବନ୍ଧୁଙ୍କର ଜ୍ୟୋତିର୍ବିଜ୍ଞାନ ପ୍ରତି ଅନୁରକ୍ତି ଥିବା ଯୋଗୁଁ ସେ ପ୍ରାଥମିକ ବିଷୟମାନ, ଯଥା ଆକାଶରେ ଗ୍ରହମାନଙ୍କ ପରିଚିତି, ସାଧାରଣ ଗୋଚରଫଳ, ଗ୍ରହ କୁଣ୍ଡଳୀ ପ୍ରସ୍ତୁତିକରଣ ପ୍ରଭୃତି ବିଷୟରେ ପୁତ୍ରକୁ ଯଥୋପଯୁକ୍ତ ଶିକ୍ଷା ପ୍ରଦାନ କରିଥିଲେ । ଏତଦ୍ଦ୍ୱାରା ସାମନ୍ତ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧରେ ଉଚ୍ଚତର ଅଧ୍ୟୟନ ଓ ଅନୁଶୀଳନ ଚଳାଇବାକୁ ଆଗ୍ରହୀ ହେଲେ । ତାଙ୍କ ଘରେ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ କେତେଗୁଡ଼ିଏ ଉପାଦେୟ ପୋଥି ଥିଲା ।

Digitized by srujanika@gmail.com

ସେ ଅବସର ସମୟରେ ସେଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବରେ ଅଧ୍ୟୟନ କରିଥିଲେ । ଏପରି କର୍ମତତ୍ପରତାର ପରିଣତି ସ୍ୱରୂପ ସେ ଗଣିତ ବିଦ୍ୟାରେ ଧୁରୀଣ ହୋଇଉଠିଲେ । ବରାହମିହିର ଓ ଭାସ୍କରାଚାର୍ଯ୍ୟଙ୍କ କୃତ ଜ୍ୟୋତିଷ ଶାସ୍ତ୍ରରେ କେତେକ ଭ୍ରମ ଲକ୍ଷ୍ୟକରି ସେ ତାର ସଂଶୋଧନ ପାଇଁ ଦୃକ୍‌ସିଦ୍ଧ ଗବେଷଣା ଆରମ୍ଭ କଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ସେତେବେଳକୁ ଏ କ୍ଷେତ୍ରରେ ଅଭିକ୍ଷିଯାତ୍ମକ ଗବେଷଣା ଚଳାଇବା ପାଇଁ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଓ ବହୁବିଧ କର୍ମନିପୁଣମାନ ଯନ୍ତ୍ର ବ୍ୟବହାର କରିଯାଉଥିଲ; ମାତ୍ର ଏସବୁ ଯନ୍ତ୍ରପାତି ସାମନ୍ତଙ୍କ ପକ୍ଷରେ ସ୍ୱପ୍ନର ବସ୍ତୁ ଥିଲ । ତଥାପି ଅଦମ୍ୟ ସାଧନାରତ ହୋଇ ଦୀର୍ଘଦିନ ଧରି ରାତି ଅନିଦ୍ରା ରହି ଆକାଶରେ ଗ୍ରହନକ୍ଷତ୍ରଗୁଡ଼ିକୁ ପର୍ଯ୍ୟବେକ୍ଷଣ କରିବା ଫଳରେ ସେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହେଲେ । ରାତ୍ରିକାଳରେ ଯେଉଁ ଅଭିକ୍ଷିଯା ପ୍ରସୂତ ପ୍ରାମାଣିକ ତଥ୍ୟ ତାଙ୍କ ପ୍ରାଣକୁ ସ୍ପର୍ଶ କରିଦିଏ, ସେଗୁଡ଼ିକୁ ସେ କାନ୍ଥରେ ଖଡ଼ି ସାହାଯ୍ୟରେ ଲେଖିରଖନ୍ତି । ସକାଳ ହେଲେ ସେଗୁଡ଼ିକୁ ତାଳପତ୍ର ପୋଥିରେ ଉତାରନ୍ତି । ତାଙ୍କ ଆଶୁ କବି-ପ୍ରତିଭା, ତଥା ସଂସ୍କୃତ ଭାଷାରେ ଅସାଧାରଣ ପାଣ୍ଡିତ୍ୟ, ସିଦ୍ଧାନ୍ତଗୁଡ଼ିକୁ ସଂସ୍କୃତ ଶ୍ଳୋକରେ ରୂପାୟିତ କରିବାରେ ସଫଳ ହୋଇଥିଲ ।

**ଧର୍ମପ୍ରାଣ ସାମନ୍ତ**—ଅନୁଗୋଳ ରାଜଜେମା ସୀତାଦେବୀଙ୍କ ସହ ମାତ୍ର ୨୨ ବର୍ଷ ବୟସରେ ସାମନ୍ତଙ୍କ ଶୁଭପରିଣୟ ସଙ୍ଘଟିତ ହୋଇଥିଲ । ସେ ରାଜବଂଶୋଦ୍ଭବ ହୋଇଥିଲେ ମଧ୍ୟ ଅତ୍ୟନ୍ତ ଦରିଦ୍ର ଥିଲେ । ବୈବାହିକ ଜୀବନର ଆଜୀବନ ତାଙ୍କୁ ଦାରିଦ୍ର୍ୟର ତୀବ୍ର କଷାଘାତରେ ସନ୍ତୁଳି ହେବାକୁ ପଡ଼ିଥିଲ; କିନ୍ତୁ ଆର୍ଥିକ

Digitized by srujanika@gmail.com

ଅନାଟନ ତାଙ୍କ ପ୍ରତିଭାର ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରି-ପାରି ନଥିଲା, କାରଣ ସେ ନିଜକୁ ସମ୍ପୂର୍ଣ୍ଣ ଭାବରେ ମହିମାମୟ ଶ୍ରୀ ଜଗନ୍ନାଥଙ୍କ ଚରଣତଳେ ସମର୍ପି ଦେଇଥିଲେ । ଜୀବନର ସମସ୍ତ ସୁଖ ଦୁଃଖ, ମାନ · ଅପମାନ ସବୁ କିଛି ସେହି ପରମେଶ୍ୱରଙ୍କ କୃପାବଳରେ ବାଧାନିର୍ଦ୍ଧିଷ୍ଟ ଭାବରେ ଘଟିଯାଉଛି ବୋଲି ସେ ବିଶ୍ୱାସ କରୁଥିଲେ । ସେ ଲେଖିଛନ୍ତି—

"ଯଦ୍ୟେଚ୍ଛାମେ ନିଜ-ଜନତୋ ଦୂରମୁତ୍ସାର୍ଯ୍ୟବୁଦ୍ଧିଂ"
ଦୈବାଧୀନଂ ଗଣିତ ବିପଣୌ ସଂପାତୟତ୍ୟାତତାୟଂ···

ଏହାର ଅର୍ଥ ହେଲା ! ତାହାଙ୍କ ଇଚ୍ଛାରେ, ମୋର ମନ ତାଙ୍କ ଭଜନରୁ ଦୂରେଇ ଯାଇ, ଦୈବାଧିନ ହୋଇ ଗଣିତ ବିପଣିରେ ପଡ଼ିଛି । ଅର୍ଥାତ୍ ଗଣିତ ଚର୍ଚ୍ଚାରେ ଲାଗିଯାଇଛି । ସେହି ଅଶେଷ ସଂଖ୍ୟାହୀନ ପତିତମାନଙ୍କୁ ଉଦ୍ଧାର କରୁଥିବା ସିନ୍ଧୁ ସୁତା ପ୍ରାଣବନ୍ଧୁ ଲକ୍ଷ୍ମୀକାନ୍ତଙ୍କ ଚରଣ ହିଁ ମୋର ଶରଣ ।

ପବିତ୍ର ପୁରୁଷୋତ୍ତମ ପୀଠରେ ଦେହତ୍ୟାଗ କରିବାପାଇଁ ସେ ଅଭିଳାଷୀ ହୋଇଥିଲେ । ସେ ସ୍ୱରଚିତ ଗ୍ରନ୍ଥରେ ଲେଖିଥିଲେ--

"ବେଳୋଦ୍ୟସିତତଗୋହେ ସୁନ୍ଦାମାଦ୍ୟସ୍ତବ ବଳୀ ପାହେ
ବଂସଂ ମମ ସୁପଦହେ ହିପତତ୍ୱ ପୁରୁଷୋତ୍ତମ କ୍ଷେତ୍ରେ ।"

ଅର୍ଥାତ୍ ସମୁଦ୍ର ତଟବର୍ତ୍ତୀ ନୀଳାଚଳ ଧାମରେ ମୋର ଦେହ ଏହି ମରଧାମ ତ୍ୟାଗକରୁ । ତାଙ୍କର ଏହି ଅଭିଳାଷ ଅବଶ୍ୟ ପୂରଣ ହୋଇପାରିଥିଲା ।

ସାମନ୍ତ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା ସ୍ୱଚେଷ୍ଟାରେ ଚଳାଇଥିବାବେଳେ ଏଇ ଜଗନ୍ନାଥ ହିଁ ଥିଲେ ତାଙ୍କ ଗବେଷଣାର

Digitized by srujanika@gmail.com

ପ୍ରକୃତ ତତ୍ତ୍ୱାବଧାରକ । ତାଙ୍କୁ ସ୍ମରଣ କରି ସାମନ୍ତ କଠୋର ଅଧ୍ୟବସାୟ ଚଳାଇବା ପାଇଁ ଅସୀମ ପ୍ରେରଣା ପାଇ ପାରିଥିଲେ ।

## ଜ୍ୟୋତିର୍ବିଜ୍ଞାନର ସମ୍ବନ୍ଧ ବଳରେ ଚନ୍ଦ୍ରଶେଖରଙ୍କ କର୍ମପ୍ରବଣତା—

ଚନ୍ଦ୍ରଶେଖର ଥିଲେ ଭୂଭ୍ରମଣବାଦର ବିରୋଧୀ । ସେ ଘୋଷଣା କରିଥିଲେ ଯେ ପୃଥିବୀ ସ୍ଥିର । ଅନ୍ୟ ଗ୍ରହମାନେ ସୂର୍ଯ୍ୟଙ୍କୁ କେନ୍ଦ୍ରକରି ଭ୍ରମଣ କରୁଛନ୍ତି ଏବଂ ସୂର୍ଯ୍ୟ ସେହି ଗ୍ରହମାନଙ୍କ ଗହଣରେ ପୃଥିବୀ ପରିକ୍ରମା କରୁଛନ୍ତି । ଅବଶ୍ୟ, ତାଙ୍କ ମତାନୁସାରୀ ଚନ୍ଦ୍ର ହେଉଛି ପୃଥିବୀର ଏକ ଘୂର୍ଣ୍ଣାୟମାନ ଉପଗ୍ରହ । ଭୂଭ୍ରମଣବାଦ ବିରୋଧରେ ତାଙ୍କର ଏପରି ଆବିଷ୍କାର ଅବଶ୍ୟ ଅଧୁନା ଗ୍ରହଣ-ଯୋଗ୍ୟ ନୁହେଁ ; ମାତ୍ର ନିଜ ଚିନ୍ତାଧାରା ସପକ୍ଷରେ ସେ ଯେପରି ବିଚକ୍ଷଣ ଭାବରେ ବଳିଷ୍ଠ ଯୁକ୍ତି ଉପସ୍ଥାପନା କରିଥିଲେ, ତାହା ସାମ୍ପ୍ରତିକ କାଳର ବହୁ ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କୁ ବିମୁଗ୍ଧ କରିଛି । ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କ ଭୂଭ୍ରମଣବାଦକୁ ଲକ୍ଷ୍ୟ କରି ସାମନ୍ତ ଲେଖିଥିଲେ ।

> "ବ୍ରହ୍ମାଣ୍ଡଖଣ୍ଡଭାଣ୍ଡ ସ୍ଥିରତର ଧରଣୀମଣ୍ଡଳ ଭ୍ରାନ୍ତଶୌଣ୍ଡ
> ପୌଢ଼ଣ୍ଡିଂଲଣ୍ଡ ଦନ୍ତାବଳ ବଦଦଳନାକୁଣ୍ଠକଣ୍ଠୀରବଶ୍ରୀଃ
> ସୋଽୟଂ ମାଳାଦ୍ରୀ ସିଂହାନ୍ୱୟ ବଦନ ଦତ୍ତାନର୍ଗରଃ ପ୍ରାପ୍ତଦୁର୍ଗଃ
> ସ୍ଫୀତ ସ୍ୱଖ୍ୟାତିରସ୍ତୁ ପ୍ରଥମ ବିଗଣିତଃ ସ୍କନ୍ଧସାରଃ ପ୍ରବନ୍ଧଃ ।"

ଅର୍ଥ—ଅଖଣ୍ଡ ଭାଣ୍ଡ ସ୍ୱରୂପ ବ୍ରହ୍ମାଣ୍ଡ ମଧ୍ୟରେ ପୃଥିବୀ ସ୍ଥିର ହେଲେ ସୁଦ୍ଧା ତାହା ଭ୍ରମଣ କରୁଛି ବୋଲି ଇଂଲଣ୍ଡୀୟ ଜ୍ୟୋତିର୍ବିଦ୍‌ମାନଙ୍କ ଭ୍ରମ ଜାତ ହୋଇଛି । ସେମାନେ ଦୁର୍ଦ୍ଦାନ୍ତ

Digitized by srujanika@gmail.com

ହସ୍ତୀ ଓ ମୋର ପ୍ରବନ୍ଧ ସିଂହ ତୁଲ୍ୟ । ମଳାବଦ୍ଧ ସିଂହବଂଶଜ ମୋର ମୂର୍ଖରୁ ଜାତ ସିଂହରୂପୀ ଏ ପ୍ରବନ୍ଧ ନିଜର ଖ୍ୟାତି ବିସ୍ତାର କରୁ ।

୯

ଚନ୍ଦ୍ରଶେଖରଙ୍କ ଗବେଷଣା ପ୍ରସୂତ ତଥ୍ୟଗୁଡ଼ିକର ମୂଲ୍ୟାଙ୍କନ କରିବା ଉଦ୍ଦେଶ୍ୟରେ ତଥା ତାଙ୍କ ଅଗାଧ ପାଣ୍ଡିତ୍ୟର ସମ୍ୟକ୍ ଆଭାସ ଯୋଗାଇ ଦେବା ଉଦ୍ଦେଶ୍ୟରେ ସଦାଶିବ ସଂସ୍କୃତ ବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟାପକ ପଣ୍ଡିତ ଶ୍ରୀ ହନୁମାନ ଶାସ୍ତ୍ରୀ ସ୍ୱରଚିତ 'ବିପ୍ଳବୀ ଚନ୍ଦ୍ରଶେଖର ଓ ସିଦ୍ଧାନ୍ତ ଦର୍ପଣ' ଶୀର୍ଷକ ପ୍ରବନ୍ଧରେ ପ୍ରସଙ୍ଗସମ୍ଭେ ଲେଖିଛନ୍ତି, "ଚନ୍ଦ୍ରଶେଖର ବେଦ ଆଦି ଅସଂଖ୍ୟ ଶାସ୍ତ୍ରର ତାତ୍ତ୍ୱିକ ଆଲୋଚନା ମଧ୍ୟ କରିଥିଲେ । ଅଥର୍ବ ବେଦରେ ଥିବା ସୂର୍ଯ୍ୟମଣ୍ଡଳ ବ୍ୟାସ ପରିମାଣ ୭୨ ହଜାର ଯୋଜନବୋଲି ସେ ସ୍ୱଗ୍ରନ୍ଥରେ ଗ୍ରହଣ କରି ଗଣିତ କରିଛନ୍ତି । ପ୍ରତିବୃତ୍ତ ଓ କକ୍ଷାବୃତ୍ତ ଯୋଜକ ଦୀର୍ଘବୃତ୍ତ (ellipse) ଓ ଗ୍ରହ ବକ୍ରଗତିର ଉତ୍ପତ୍ତି କୌଶଳ ବୁଝାଇବାରେ ତାଙ୍କ ପରି ସେ ବୋଲି ବର୍ତ୍ତମାନ ପାଟନାର ଜ୍ୟୋତିଷୀ ଶ୍ରୀକପିଳେଶ୍ୱର ଶାସ୍ତ୍ରୀ ଅତି ଦୃଢ଼ଭାବରେ ଦର୍ଶାଇଛନ୍ତି । ଏଲାହାବାଦ ବିଶ୍ୱବିଦ୍ୟାଳୟର ଗଣିତ ଅଧ୍ୟାପକ ଡକ୍ଟର ୬ ଗୋରଖନାଥ ମଧ୍ୟ ତାଙ୍କ ବିଷୟରେ ଚନ୍ଦ୍ରଶେଖରଙ୍କର ବିପ୍ଳବର ଭୂୟସୀ ପ୍ରଶଂସା କରିଛନ୍ତି । ଚନ୍ଦ୍ରଶେଖର ଲାଲ୍ଲ ଓ ଶ୍ରୀପତି ପ୍ରଭୃତିଙ୍କ ଦିଗଂଶ, ପାକ୍ଷିକ ଓ ଭୁଜାନ୍ତର ଆଦି ଚନ୍ଦ୍ର ସଂସ୍କାର ଅତି ପୂଜ୍ୟତାର ସହ ଗ୍ରହଣ କରିଯାଇଛନ୍ତି । କେବଳ ଓଡ଼ିଆ ଲିପି ଓ ଓଡ଼ିଆ ତଥା ସଂସ୍କୃତ ଭାଷା ଛଡ଼ା ତାଙ୍କୁ ଅନ୍ୟ କୌଣସି ଲିପି ବା ଭାଷା ଜଣା ନ ଥିଲା । ତଥାପି ସେ ସମସ୍ତଙ୍କ ଗ୍ରନ୍ଥର ସମାଲୋଚନା କରିପାରିଥିଲେ—ପୁଣି ଖଣ୍ଡପଡ଼ାରେ ରହି

Digitized by srujanika@gmail.com

ଏହା ଚିନ୍ତା କଲେ, ବାସ୍ତବିକ୍ ସ୍ତବ୍ଧ ହୋଇଯିବାକୁ ପଡ଼େ ।......
ସାଧାରଣ ଗଣିତ ସମ୍ପର୍କରେ ଭାସ୍କରଙ୍କୁ ପ୍ରଶଂସା କରିଥିଲେ ମଧ୍ୟ ଯେଉଁଠି ସେ ତାଙ୍କଠାରେ ଭୁଲ୍ ଦେଖିଛନ୍ତି ତାର କଠୋର ସମାଲୋଚନା କରିବାକୁ ପଛାଇ ନାହାନ୍ତି । ସେ ଲେଖିଛନ୍ତି—

"ଶ୍ରୀମନ ଭାସ୍କର ! ଦୁଷ୍କରଙ୍କ ଘଟନା......ଏବଂ
ଆଚାର୍ଯଃ (ଭାସ୍କରାଚାର୍ଯ୍ୟ) କଲ୍ପ ଭଗାଣ୍ଡନ୍
ଯଦା ହେଷ ମହାନ୍‌ଗୁଣଃ । ତ୍ରିକୃଣହେନ ମାସାହ
ସଂଖ୍ୟାଭେଦସ୍ତୁ ଦୂଷଣମ୍ ॥
ତଥାପ୍ୟେଷ ନଜେକାଳେ ଲିଖିତା ଦୃକ୍‌ସମାନ୍ ଗ୍ରହାନ୍
ମହୋପକାର ମକରୋନ୍ମାଦୃଶା ସନ୍ତୁସଂବଦାମ୍ ॥"

## ଅଭିକ୍ରିୟାତ୍ମକ ଗବେଷଣା ଚଳାଇବାରେ ବିଚକ୍ଷଣ କର୍ମକୁଶଳତା—

ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଅଭିକ୍ରିୟାତ୍ମକ ଗବେଷଣାର ନାମୋଚ୍ଚାରଣ କରିବା ମାତ୍ରକେ ଆମ ଆଖି ଆଗରେ କେତୋଟି କର୍ମନିପୁଣ ଯନ୍ତ୍ରର ଛବି ଝଲସି ଉଠେ । ଏପରି ଗବେଷଣା ବର୍ତ୍ତମାନ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ପରିଚାଳନା କରାଯାଉଛି । ସୁଦୂର ମହାକାଶପିଣ୍ଡର ସ୍ପଷ୍ଟ ପ୍ରତିବିମ୍ବ ଅବଲୋକନ କରିବାରେ ପୃଥିବୀର ବାୟୁମଣ୍ଡଳ ଅନ୍ତରାୟ ସୃଷ୍ଟି କରୁଥିବାରୁ କର୍ମକୁଶଳୀ ବୈଜ୍ଞାନିକମାନେ ବେତାର ଦୂରବୀକ୍ଷଣ ଯନ୍ତ୍ରଗୁଡ଼ିକର ସାହାଯ୍ୟ ନେଉଛନ୍ତି । କୌଣସି ସୁଦୂର ମହାକାଶପିଣ୍ଡ ଦ୍ୱାରା ପ୍ରେରିତ ବେତାର ସଙ୍କେତକୁ ସଂଗ୍ରହ କରି ତଥା ତାହାକୁ ଅନୁଶୀଳନ କରି ବୈଜ୍ଞାନିକମାନେ ଉକ୍ତ ଜ୍ୟୋତିଷ୍କର ଅବସ୍ଥିତି ଓ ଭୌତିକ

Digitized by srujanika@gmail.com

ପ୍ରକୃତ ସମ୍ବନ୍ଧରେ ପ୍ରାମାଣିକ ତଥ୍ୟ ସଂଗ୍ରହ କରୁଛନ୍ତି । ମାଉଣ୍ଟ ପାଲୋମାର ତଥା ଜଡ୍ରେଲ୍ ବ୍ୟାଙ୍କ୍ସ୍ଥିତ ବେତାର ଦୂରବୀକ୍ଷଣ ଯନ୍ତ୍ର ଜ୍ୟୋତିର୍ବିଜ୍ଞାନର ସମୃଦ୍ଧି ସାଧନ ଦିଗରେ ଯେପରି ତାତ୍ପର୍ଯ୍ୟ-ପୂର୍ଣ୍ଣ ଭୂମିକା ଗ୍ରହଣ କରୁଛି, ତତ୍‌ସମ୍ବନ୍ଧୀୟ ବିବରଣୀ ବର୍ତ୍ତମାନ ସର୍ବଜନବିଦିତ । ବିପୁଳ ଅର୍ଥ ବିନିମୟରେ ନିର୍ମିତ ଏହି ବୃହଦାକୃତି ଯନ୍ତ୍ରଗୁଡ଼ିକୁ ବର୍ତ୍ତମାନ ଜ୍ୟୋତିର୍ବିଜ୍ଞାନୀମାନେ ହାତବାରିସି ରୂପେ ବ୍ୟବହାର କଲେଣି । ପୁଣି, ଇନ୍‌ଫ୍ରାରେଡ଼୍ ରଶ୍ମି, ଅତିବେଗ୍ନି ରଶ୍ମି ଓ ରଞ୍ଜନରଶ୍ମିର ଆପତନ ଯୋଗୁଁ ସକ୍ରିୟ ହୋଇ-ପାରୁଥିବା ଯନ୍ତ୍ରଗୁଡ଼ିକର ସାହାଯ୍ୟ ନିଆଯାଇ ଜ୍ୟୋତିର୍ବିଜ୍ଞାନର ସମୃଦ୍ଧି ସାଧନ କରାଯାଉଛି । ଚଳିତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମହାକାଶ ବିଜ୍ଞାନର ଯେପରି ସମୃଦ୍ଧି ସାଧନ କରାଯାଇଛି, ତାହା ବିଜ୍ଞାନର ଇତିହାସରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଜ୍ୟୋତିର୍ବିଜ୍ଞାନର ସମୃଦ୍ଧି ପାଇଁ ମଧ୍ୟ ଅଭିନବ ଦିଗ୍‌ଦର୍ଶନ ପ୍ରଦାନ କରୁଛି । ବାୟୁବିହୀନ ଚନ୍ଦ୍ରପୃଷ୍ଠରେ ମାନମନ୍ଦିର ପ୍ରତିଷ୍ଠା କରି ସୁଦୂର ମହାକାଶପିଣ୍ଡଗୁଡ଼ିକ ସମ୍ପର୍କରେ ଯାବତୀୟ ତଥ୍ୟ ସଂଗ୍ରହ କରିବାକୁ ବୈଜ୍ଞାନିକମାନେ ଉଦ୍ୟମ ଚଳାଇଲେଣି । ପାର୍ଥିବ ବାୟୁମଣ୍ଡଳର ବହୁ ଊର୍ଦ୍ଧ୍ୱରେ ଗତିଶୀଳ ମହାକାଶ-ଯାନଗୁଡ଼ିକରେ ସୁଗ୍ରାହୀ ଯନ୍ତ୍ର ତଥା କର୍ମନିପୁଣ କ୍ୟାମେରାଗୁଡ଼ିକୁ ସ୍ଥାପନା କରାଯିବା ଦ୍ୱାରା ଜ୍ୟୋତିଷ୍କମାନଙ୍କ ଗତିବିଧି ଓ ପ୍ରକୃତ ସମ୍ବନ୍ଧରେ ପ୍ରାମାଣିକ ତଥ୍ୟ ସଂଗ୍ରହ କରାଯାଉଛି ।

ସାମନ୍ତ ଚନ୍ଦ୍ରଶେଖର ଯେଉଁ ସମୟରେ ଏ ସମ୍ପର୍କୀୟ ଅଭିଜ୍ଞିୟାତ୍ମକ ଗବେଷଣାରେ ମନୋନିବେଶ କରିଥିଲେ, ସେତେ-ବେଳକୁ ଅବଶ୍ୟ ପାଶ୍ଚାତ୍ୟ ଦେଶର ବୈଜ୍ଞାନିକମାନେ ଉଲ୍ଲିଖିତ ଯନ୍ତ୍ରକୌଶଳଗୁଡ଼ିକର ସାହାଯ୍ୟ ନେବାକୁ ସମର୍ଥ ହୋଇ

Digitized by srujanika@gmail.com

ନଥିଲେ; ମାତ୍ର ସେମାନେ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ରଗୁଡ଼ିକୁ ଏଥିପାଇଁ ବ୍ୟବହାର କରୁଥିଲେ ; ମାତ୍ର ସାମନ୍ତ ଚନ୍ଦ୍ରଶେଖର ନିଜ ଜୀବନ କାଳ ମଧ୍ୟରେ ଦୂରବୀକ୍ଷଣ ଯନ୍ତ୍ରଟିଏ ବ୍ୟବହାର କରିବାର ସୁବିଧା ପାଇ ନ ଥିଲେ । ଇଂରାଜୀ ଭାଷାରେ ଅନଭିଜ୍ଞ ହୋଇଥିବାରୁ ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କ ଗବେଷଣା ପ୍ରସୂତ ଫଳକୁ ଅନୁଧ୍ୟାନ କରିବା ତ କଦାପି ତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିବ, ତାହାହେଲେ ବିଜ୍ଞାନର ଗନ୍ଧ ପଡ଼ି ନ ଥିବା ଓଡ଼ିଶାର ଗୋଟିଏ ଅଜ୍ଞାତ ପଲ୍ଲୀର ନିଭୃତ କୋଣରେ ବାସ କରି ସେ ଏପରି ଗୋଟିଏ ଦୁଃସାଧ୍ୟ ବ୍ୟାପାରରେ ଆତ୍ମନିୟୋଗ କରିବାକୁ କିପରିଭାବରେ କେଉଁ କାରଣ ଯୋଗୁଁ ଯତ୍ନଶୀଳ ହୋଇଥିଲେ ? ପୁଣି, ତାଙ୍କ ପ୍ରଚେଷ୍ଟା ଫଳପ୍ରସୂ ହେଲା କିପରି ? ଏହି ବିସ୍ମୟୋଦ୍ଦୀପକ ପ୍ରଶ୍ନଗୁଡ଼ିକର ଉତ୍ତର ସେ ନିଜେ ନିଜେ ଅପୂର୍ବ କର୍ମକୁଶଳତା ବିନିମୟରେ ଆମ ପାଇଁ ତଥ୍ୟ ଯୋଗାଇ-ପାରିଛନ୍ତି ।

ଖଣ୍ଡପଡ଼ା ଭଳି ଗୋଟିଏ କୁହସ୍ଥାବିଚ୍ଛିନ୍ନ ଅବହେଳିତ ସ୍ଥାନରେ ଅବସ୍ଥାନ କରୁଥିଲେ ମଧ୍ୟ ଯୋଗଜନ୍ମା ପ୍ରତିଭାବନ୍ତ ଚନ୍ଦ୍ରଶେଖର ଅଭିନିବିଷ୍ଟାତ୍ମକ ଗବେଷଣା ଚଳାଇବା ପାଇଁ ନିଜ ବୁଦ୍ଧିବଳରେ ବିଚକ୍ଷଣ ଭାବେ କର୍ମନିପୁଣ ସରଳ ଯନ୍ତ୍ରଗୁଡ଼ିକୁ ନିଜ ହାତରେ ତିଆରି କରିଥିଲେ । ବାଉଁଶ ପାତିଆ ଓ କାଠପଟା ସାହାଯ୍ୟରେ ନିଜ ଗବେଷଣା ପାଇଁ ବିଭିନ୍ନ ଆକୃତିର ମାନଯନ୍ତ୍ର ପ୍ରସ୍ତୁତ କରିଥିଲେ । ସମୟ ମାପିବା ପାଇଁ ସେ ଗୋଟିଏ ସୂର୍ଯ୍ୟଘଡ଼ି ମଧ୍ୟ ତିଆରି କରିଥିଲେ । କାଠକୁ କାଟି ଖଞ୍ଜି ବହୁବିଧ ଜ୍ୟାମିତିକ ଆକୃତି ବିଶିଷ୍ଟ ମାନଯନ୍ତ୍ରଗୁଡ଼ିକୁ ସେ ଯେପରି ସହଜ ଉପାୟରେ ତିଆରି କରିଥିଲେ ଏବଂ ସେଗୁଡ଼ିକର ସାହାଯ୍ୟ ନେଇ ଗ୍ରହନକ୍ଷତ୍ର-ମାନଙ୍କ ଗତିବିଧି ସମ୍ପର୍କରେ ଅସୀମ ଧୈର୍ଯ୍ୟ ସହକାରେ ଯେପରି

Digitized by srujanika@gmail.com

ପ୍ରାମାଣିକ ତଥ୍ୟରାଜି ସଂଗ୍ରହ କରିଥିଲେ, ତାହା କାଳେଗଣ୍ଠି ଧ୍ୟାରେ ତାଙ୍କ ନିପୁଣତାର ତଥ୍ୟ ବୈଜ୍ଞାନିକ ଗବେଷଣା ଚଳାଇବାରେ ତାଙ୍କ ପାରଦର୍ଶିତାର ପରାକାଷ୍ଠା ପ୍ରଦର୍ଶନ କରୁଛି । ତାଙ୍କ ଦ୍ୱାରା ବ୍ୟବହୃତ ସମସ୍ତ ସାମଗ୍ରୀ ରାଜ୍ୟ ସଂଗ୍ରହାଳୟରେ 'ସାମନ୍ତ ଚନ୍ଦ୍ରଶେଖର ଗ୍ୟାଲେରୀ'ରେ ସଂରକ୍ଷିତ ହୋଇଛି । ଏଗୁଡ଼ିକୁ ବ୍ୟବହାର କରି ବର୍ତ୍ତମାନ କେହି ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଅଭିଜ୍ଞାତ୍ମକ ଗବେଷଣା ଚଳାଇବାକୁ କାହିଁକି ବା ମନ ବଳାଇବେ ? ମାତ୍ର ସେ କାଳରେ ଚନ୍ଦ୍ରଶେଖର ଏଗୁଡ଼ିକର ସାହାଯ୍ୟ ନେଇ ବହୁ ଗ୍ରହନକ୍ଷତ୍ରଙ୍କ ଗତିବିଧି; ଚନ୍ଦ୍ରଗ୍ରହଣ, ସୂର୍ଯ୍ୟ-ପରାଗ, ଅୟନାଂଶ ପ୍ରଭୃତି ଗଣନା ପାଇଁ ଚମତ୍କାରପ୍ରଦ ଅଭିଜ୍ଞାତ୍ମକ ଗବେଷଣା ଚଳାଇଥିଲେ । ବିଜ୍ଞାନର ଗନ୍ତାଘରକୁ ତାଙ୍କ ଅବଦାନ ସମ୍ବନ୍ଧରେ ସବିଶେଷ ବିବରଣୀ ଏ ପୁସ୍ତିକାରେ ଯୋଗାଇଦେବା କଦାପି ସମ୍ଭବ ନୁହେଁ । ଏଠାରେ କେବଳ ଅୟନାଂଶ ସମ୍ବନ୍ଧୀୟ ତାଙ୍କ ଗବେଷଣା ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ବହୁ ପରୀକ୍ଷାନିରୀକ୍ଷା କରି ସାମନ୍ତ ଏ ବିଷୟରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ପ୍ରବୀଣ ଜ୍ୟୋତିର୍ବିଦ୍ ପଣ୍ଡିତ ବାଇକୋଳି ଜ୍ୟୋତିଷ ବିଶାରଦ ତତ୍-ସମ୍ବନ୍ଧୀୟ ମନ୍ତବ୍ୟ ଦେବାକୁ ଯାଇ 'ଅୟନାଂଶ ସମ୍ବନ୍ଧେ ଚନ୍ଦ୍ର-ଶେଖରଙ୍କ ମତ' ଶୀର୍ଷକ ଗୋଟିଏ ସାରଗର୍ଭକ ପ୍ରବନ୍ଧରେ ପ୍ରସଙ୍ଗକ୍ରମେ ଲେଖିଛନ୍ତି, "...ଭାରତୀୟ ପଞ୍ଜିକା ଗଣନା ନିରୟନ ମତରେ ହୁଏ । ତେଣୁ ପଞ୍ଜିକାରେ ଗ୍ରହସ୍ଫୁଟରେ ଅୟନାଂଶ ଯୋଗକରି ସାୟନ ଗ୍ରହ ଅଣାଯାଏ । ଧର୍ମକୃତ୍ୟାଦିରେ ସାୟନ ମତ ଗ୍ରାହ୍ୟ ନ ହେବା ହେତୁ ଆମେ ତିଥି ସାଧନାଦିରେ ଅୟନାଂଶକୁ ଗ୍ରହଣ କରୁନାହିଁ । ପଞ୍ଜିକା ସଂସ୍କାର ସମିତି ୧୮୯୧ ଶତାବ୍ଦ ମେଷର

Digitized by srujanika@gmail.com

(୧।୪।୧୮୬୯) ଦିନକୁ ଅୟନାଂଶ ୨୩°।୨୫'।୪୦' ବୋଲି ଧରି ନେଲେ । ଚନ୍ଦ୍ରଶେଖରଙ୍କ ମତରେ ଏ ଦିନ ହେଲା ୨୩°।୩୭'।୫୩'। ଏହି ତଫାତ ବର୍ତ୍ତମାନ ପାଇଁ ଅତ୍ୟଳ୍ପ ହେଲେହେଁ (ବାରକଳା ତେର ବିକଳା ମାତ୍ର) ପ୍ରତ୍ୟେକ ବର୍ଷ ପ୍ରାୟ ୬ ବିକଳା ପ୍ରଭେଦରେ ବୃଦ୍ଧି ପାଇଲେ—ଶହେ ବର୍ଷରେ ତଫାତ୍ ୧୦ କଳା ହେବ ଓ ଛ ଶହ ବର୍ଷରେ ପ୍ରଭେଦ ଏକ ଅଂଶରୁ ବଳିଯିବ । 'କରଣରତ୍ନ' ଗ୍ରନ୍ଥ ଯେଉଁ ଅୟନାଂଶ ଗତି ନିଜେ ଗ୍ରହବୋଧ ଦ୍ୱାରା ପ୍ରତ୍ୟକ୍ଷ ଅନୁଭୂତିରେ ଗ୍ରହଣ କରିଛନ୍ତି ତାହା ସିଦ୍ଧାନ୍ତ ଦର୍ପଣାନୁରୂପ । ତାଙ୍କ ହିସାବରେ ଉପଯୁକ୍ତ ଦିବସରୁ ଅୟନାଂଶ ହେଉଛି ୨୨°।୩୭'।୩୯' ମାତ୍ର । ତାଙ୍କର ବାର୍ଷିକ ଗତି ହେଲା ୫୬।୩୬। ସେ ୪୨୧ ଶକାବ୍ଦକୁ ଅୟନ ଗତକାଳ ବୋଲି ଧରିଅଛନ୍ତି । ଦୃକ୍‌ଗଣିତରେ ଯାହା ଦେଖାଯାଉଛି ତାହା ଚନ୍ଦ୍ରଶେଖରଙ୍କ ମତକୁ ସମର୍ଥନ କରୁଛି । ତେଣୁ **ତାଙ୍କ ଅୟନାଂଶ ସଂପୂର୍ଣ୍ଣ ଶୁଦ୍ଧ ଅଟେ ।**

## ସିଦ୍ଧାନ୍ତ ଦର୍ପଣ

ବହୁଦିନର ଅଭିଜ୍ଞତା, ଅଧ୍ୟୟନ, ଅନୁଶୀଳନ, ସ୍ୱକୀୟ ଗବେଷଣା ଲବ୍ଧ ପ୍ରାମାଣିକ ତଥ୍ୟରାଜିର ସଦୁପଯୋଗ ବଳରେ ତାଙ୍କ ସମସ୍ତ ସିଦ୍ଧାନ୍ତ ସମାହାରକୁ ନେଇ ମାତ୍ର ୩୪ ବର୍ଷ ବୟସରେ ସେ 'ସିଦ୍ଧାନ୍ତ ଦର୍ପଣ' ନାମରେ ଗୋଟିଏ ସିଦ୍ଧାନ୍ତ ଗ୍ରନ୍ଥ ରଚନା କଲେ । ଏହା ସମ୍ପୂର୍ଣ୍ଣ ହୋଇଥିଲା ୧୮୬୯ ମସିହା ଅପ୍ରେଲ ୧୨ ତାରିଖରେ । ଉଦାରମନା ଆଠମଲ୍ଲିକର ମହାରାଜା ଶ୍ରୀ ମହେନ୍ଦ୍ର ଦେବ ଏହାର ପ୍ରକାଶନ ଦାୟିତ୍ୱ ବହନ କରିଥିଲେ । ଏହି ଗ୍ରନ୍ଥର ପ୍ରାରମ୍ଭରେ ରେଭେନ୍‌ସା

Digitized by srujanika@gmail.com

ମହାବିଦ୍ୟାଳୟର ପୂର୍ବତନ ଅଧ୍ୟାପକ ଜ୍ଞାନଲବ୍ଧ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଇଂରାଜୀ ଭାଷାରେ ସ୍ୱରଚିତ ଗୋଟିଏ ବୃହତ୍ କଳେବରବିଶିଷ୍ଟ ମୁଖବନ୍ଧ ସନ୍ନିବେଶିତ କରିଥିଲେ ଏବଂ ଏହି ମୁଖବନ୍ଧରେ ଚନ୍ଦ୍ରଶେଖରଙ୍କୁ ଇତିହାସ-ପ୍ରସିଦ୍ଧ ଜ୍ୟୋତିର୍ବିଜ୍ଞାନୀ ଟାଇକୋ ବ୍ରାହେଙ୍କ ସଙ୍ଗେ ତୁଳନା କରିବା ସଙ୍ଗେ ସଙ୍ଗେ ତାଙ୍କର ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ, ଶ୍ଳୋକ ରଚନା କରିବାରେ ତାଙ୍କର ଅସାଧାରଣ ପାରଦର୍ଶିତା, ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା ପ୍ରତି ତାଙ୍କ ପ୍ରବନ୍ଧ ମୋହ, କାଷ୍ଠନିର୍ମିତ ସ୍ୱୀୟ ମାନଯନ୍ତ୍ର ସାହାଯ୍ୟରେ ମହାକାଶ ନିରୀକ୍ଷଣ ଜ୍ୟୋତିଷ୍କମାନଙ୍କ ଗତିବିଧି ସମ୍ପର୍କରେ ତାଙ୍କର ନିର୍ଭୁଲ ଗଣନା ପ୍ରଭୃତି ବହୁତଥ୍ୟ ଯୋଗାଇପାରିଛନ୍ତି । ଯୋଗେଶ ଚନ୍ଦ୍ରଙ୍କ ମହତ୍ ଉଦ୍ୟମ ଯୋଗୁଁ ବ୍ରିଟିଶ ସରକାର ସାମନ୍ତଙ୍କ ପ୍ରତିଭାର ସମ୍ୟକ୍ ମୂଲ୍ୟାୟନ କରିବାକୁ ସମର୍ଥ ହୋଇଥିଲେ । ଭାରତର ତତ୍କାଳୀନ ଭାଇସ୍‌ରାୟ ତାଙ୍କୁ 'ମହାମହୋପାଧ୍ୟାୟ' ଉପାଧି ଦ୍ୱାରା ସମ୍ମାନିତ କରିଥିଲେ ।

ଜ୍ୟୋତିର୍ବିଜ୍ଞାନ ତଥ୍ୟାଶ୍ରୟୀ ସିଦ୍ଧାନ୍ତ ଦର୍ପଣରେ ସମୁଦାୟ ୨୫୦୦ ଶ୍ଳୋକ ରହିଛି । ସେଥିରୁ ୨୧୭ଟି ଶ୍ଳୋକ ଅନ୍ୟ ଗ୍ରନ୍ଥମାନଙ୍କରୁ ଉଦ୍ଧୃତ ହୋଇଛି । ପରିଶିଷ୍ଟ ବିଭାଗରେ ପଞ୍ଜାଙ୍ଗ ନିର୍ମାଣ ପାଇଁ ମଧ୍ୟ ସୂତ୍ରମାନ ରହିଛି । ସିଦ୍ଧାନ୍ତ ଦର୍ପଣ ଗଣିତ ଜ୍ୟୋତିଷ ଦୃଷ୍ଟିରୁ ଯେପରି ଉପାଦେୟ, ମଧୁର ଛନ୍ଦୋବଦ୍ଧ ବାକ୍ୟ ଭଳି ଏହାର ଆବୃତ୍ତି ସେହିପରି ମନୋମୁଗ୍ଧକର । ଏହାର ପଦବିନ୍ୟାସ କାବ୍ୟରସିକତା ଓ ବିଦଗ୍ଧତାର ପ୍ରତୀକ । ତାଙ୍କ ମାନସ ସନ୍ତାନ 'ସିଦ୍ଧାନ୍ତ ଦର୍ପଣ'ର ସମ୍ୟକ୍ ମୂଲ୍ୟାୟନ କରି ସେ ଯୁଗର କବିଗୁରୁ ରାଧାନାଥରାୟ ଯଥାର୍ଥରେ ଲେଖିଥିଲେ—

Digitized by srujanika@gmail.com

"ଭୋଗ ବିଳାସୀଙ୍କ ଜୀବନ ସଂଚିତ
କୋଟି କୋଟି ମୁଦ୍ରା ବ୍ୟୟେ ସୁଗଠିତ
ପ୍ରାସାଦ, ସଜ୍ଜିତ ସୁପରିପାଟୀରେ
ମାଟି ଦ୍ରବ୍ୟ ମିଶିଯିବ ମାଟିରେ ।
ମାତ୍ର ଉତ୍କଳର ଦର୍ପ ଶତ୍ ପ୍ରସୂତ
ଜ୍ୟୋତିଷ୍କ ଦର୍ପଣ, ଦରିଦ୍ରର କୃତ ।
ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ ।"

ସିଦ୍ଧାନ୍ତ ଦର୍ପଣର ପ୍ରଣେତା ରୂପେ ସେ ବ୍ରିଟିଶ୍ ସରକାରଙ୍କର କିପରି ଶ୍ରଦ୍ଧାଭାଜନ ହୋଇଥିଲେ ତଥା ବୈଷୟିକ ବ୍ୟାପାର ପ୍ରତି କିପରି ଅନ୍ୟମନସ୍କ ଥିଲେ, ତାର ସୂଚନା ୧୮୯୪ ଖ୍ରୀଷ୍ଟାବ୍ଦରେ "ଓଡ଼ିଆ ଓ ନବ ସମ୍ବାଦ" ଶୀର୍ଷକ ଗୋଟିଏ ପତ୍ରିକାରେ ପ୍ରକାଶିତ ସମ୍ବାଦରୁ ମିଳୁଛି । ଏହି ପତ୍ରିକାର ୫ । ୯ । ୧୮୯୪ ସଂଖ୍ୟାରେ ନିମ୍ନଲିଖିତ ସମ୍ବାଦଟି ମୁଦ୍ରିତ ହୋଇଛି ।

"ଗତ ବୁଧବାର ଦିନ (୩୦ ଅଗଷ୍ଟ ୧୮୯୪) ଅପରାହ୍ନ ଦୁଇ ବାଜିବା ସମୟରେ ଏ ନଗରସ୍ଥ ବାରବାଟୀ କିଲ୍ଲାଠାରେ ଖଣ୍ଡପଡ଼ାର ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ରଙ୍କୁ ମହାମହୋପାଧ୍ୟାୟ ଏବଂ କାଉପୁର ଜମିଦାର ବାବୁ ଗୋବିନ୍ଦବଲ୍ଲଭ ରାଏ ମହାଶୟଙ୍କୁ ରାୟ ବାହାଦୁର ପଦରେ ସନନ୍ଦ ପ୍ରଦାନ ନିମିତ୍ତ ଓଡ଼ିଶାର କମିଶନର ସାହେବ ବଙ୍ଗୀୟ ଗଭର୍ଣ୍ଣମେଣ୍ଟଙ୍କ ଆଦେଶମତେ ଏକ ଦରବାର କରିଥିଲେ । X X X ଏହି ଦିନ ଅପରାହ୍ନ ୪ ଘଣ୍ଟା ସମୟରେ ଶ୍ରୀ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ଏ ନଗରରେ ଉପସ୍ଥିତ ହେଲେ । ତାହାଙ୍କ କହିବାରୁ

Digitized by srujanika@gmail.com

ଜଣାଗଲା ଯେ ସେ ଦରବାର ସମୟରେ ଏ ନଗରର ସୀମାମଧ୍ୟରେ ପହଞ୍ଚିଥିଲେ, ମାତ୍ର ଦରବାର ସେ ଦିନ ନ ହୋଇ ତହିଁ ଆରଦିନ ହେବାର ଭ୍ରମବଶତଃ ବୁଝିଥିବାରୁ ଯଥା ସମୟରେ ଦରବାରକୁ ଆସିବା ବିଷୟରେ ଯତ୍ନବାନ ହୋଇ ନ ଥିଲେ । ଏହି ଭ୍ରମଦ୍ୱାରା ସେ ପଣ୍ଡିତମାନଙ୍କର ବୈଷୟିକ ବ୍ୟାପାରରେ ସର୍ବଦା ଅନ୍ୟମନସ୍କ ଥିବାର ଯଥାର୍ଥରେ ପରିଚୟ ଦେଇଅଛନ୍ତି ।”

ପରବର୍ତ୍ତୀ ସଂଖ୍ୟା ୧୨ । ୯ । ୧୮୯୪ ତାରିଖର ‘ଓଡ଼ିଆ ଓ ନବସମ୍ବାଦରୁ, ଜଣାଯାଏ ଯେ ତତ୍କାଳୀନ ଇଂରେଜ ସରକାରଙ୍କ ପ୍ରତିନିଧି ଏଥିରେ କ୍ଷୁର୍ଣ୍ଣ ହେବାର ତ ଦୂରର କଥା, ସାମନ୍ତ ଚନ୍ଦ୍ରଶେଖରଙ୍କ ସମ୍ମାନ ଉଦ୍ଦେଶ୍ୟରେ ୧୦ । ୯ । ୧୮୯୪ ତାରିଖ ଦିନ ସ୍ୱତନ୍ତ୍ର ଦରବାର କରି ସନନ୍ଦ ପ୍ରଦାନ କରିଥିଲେ । ସେ କାଳର ଏକ ବିଦେଶୀ ଶାସକ ପରାଧୀନ ଅଥଚ ଅନୁନ୍ନତ ଓଡ଼ିଶାର ଜଣେ ନାଗରିକ ପ୍ରତି ସ୍ୱତନ୍ତ୍ର ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ ସାମନ୍ତ ଚନ୍ଦ୍ର ଶେଖରଙ୍କ ବ୍ୟକ୍ତିତ୍ୱ ଓ ମହାନ୍ ପ୍ରତିଭାର ପରିଚୟ ପ୍ରଦାନ କରୁଅଛି ।

୧୮୯୯ ମସିହାରେ ବ୍ରିଟିଶ ଜର୍ଣ୍ଣାଲ ‘ନଲେଜ୍’ରେ ସାମନ୍ତଙ୍କ କୃତ ସିଦ୍ଧାନ୍ତ ଦର୍ପଣ ଉପରେ ପାଶ୍ଚାତ୍ୟ ବୈଜ୍ଞାନିକମାନେ ଭୂୟସୀ ପ୍ରଶଂସା ପୂର୍ଣ୍ଣ ମନ୍ତବ୍ୟ ମାନ ପ୍ରକାଶ କରିଥିଲେ । ଏଥିରେ ଲେଖାଥିଲା—

**“...It demonstrates the degree of accuracy which was possible in astronomical observation before the invention of telescope, and it enables us to watch, as it were, one of the astronomers of horay forgotten entiquity actually at his work before us to day.”**

Digitized by srujanika@gmail.com

# କଳାପ୍ରାଣ ସାମନ୍ତଙ୍କ ଅନ୍ତିମ ଜୀବନ

ପରିବାରର ଭରଣପୋଷଣ ଓ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ଗବେଷଣାରେ ଉତ୍ସର୍ଗୀକୃତ ଜୀବନଯାପନ କରିଥିବା ସାମନ୍ତ ଚନ୍ଦ୍ରଶେଖର ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସମ୍ବନ୍ଧରେ ଚର୍ଚ୍ଚାକରିବାକୁ ଆଗ୍ରହୀ ହେଉଥିଲେ । ଯାହା ଓ ନାଟ୍ୟକଳା ପ୍ରତି ତାଙ୍କର ଯଥେଷ୍ଟ ଆଗ୍ରହ ଥିବା ଲୋକ କଥା ଆଜିପର୍ଯ୍ୟନ୍ତ ଶୁଣିବାକୁ ମିଳେ । ସେ ଖୁବ୍ ଅନଦ୍ରା ରହି ପାଲା ଶୁଣୁଥିଲେ ଓ ଗାୟକଙ୍କ ସହ ଅର୍ଥ ଅର୍ଥାନ୍ତର ନେଇ ଆଲୋଚନା କରିବାକୁ ସୁଖ ମଣୁଥିଲେ ।

ଗୁଣମୁଗ୍ଧ ବ୍ରିଟିଶ ସରକାର ତାଙ୍କପାଇଁ ମାସିକ ୫୦ ଟଙ୍କା ବୃତ୍ତି ମଞ୍ଜୁର କରିଥିଲେ । ସେ ଏହି ଆର୍ଥିକ ସାହାଯ୍ୟ ପୁରୀ ଟ୍ରେଜେରୀରୁ ଗ୍ରହଣ କରୁଥିଲେ ।

ଅନ୍ତିମକାଳ ଆସନ୍ନ ଜାଣି ସେ ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିଥିଲେ ଏବଂ ତାଙ୍କର ଗଣନା ଅନୁସାରେ ଏକ ମାହେନ୍ଦ୍ର ବେଳାରେ ୧୯୦୪ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ଏଗାର ତାରିଖ ଦିନ ତାଙ୍କ ଅମରଆତ୍ମା ନଶ୍ୱର ଦେହ ପରିତ୍ୟାଗ କରି ବୈକୁଣ୍ଠପ୍ରାପ୍ତି ହୋଇଥିଲା ।

ଆମେ ଜାଣୁ ଯେ ୧୯୭୩ ମସିହାରେ ପୃଥିବୀର ସବୁଦେଶରେ ଭୂଭ୍ରମଣବାଦର ପ୍ରତିଷ୍ଠାତା ପ୍ରବୀଣ ଜ୍ୟୋତିର୍ବିଜ୍ଞାନୀ କୋପେର୍ନିକସ୍‌ଙ୍କ ୫୦୦ ତମ ଜୟନ୍ତୀ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଛି । ତାଙ୍କ ଦ୍ୱାରା ରଚିତ ଅମୂଲ୍ୟ ଗ୍ରନ୍ଥଟିକୁ ପୃଥିବୀର ବହୁଳ ଦେଶରେ ଜନସାଧାରଣ ନିଜ ମାତୃଭାଷାରେ ପାଠ କରିପାରୁଛନ୍ତି । ପୋଲଣ୍ଡ ଦେଶର ଗୁଣଗ୍ରାହୀ ସରକାର ପୋଲଣ୍ଡ ଦି ଲ୍ୟାଣ୍ଡ ଅଫ୍

Digitized by srujanika@gmail.com

କୋପେରନିକସ୍' ଶୀର୍ଷକ ପୁସ୍ତକ ଜରିଆରେ ପୃଥିବୀର ବିଭିନ୍ନ ଦେଶରେ ପୋଲାଣ୍ଡର ଗୌରବାବହ ଐତିହ୍ୟକୁ ବିଜ୍ଞାପିତ କରାଉଛନ୍ତି; ମାତ୍ର ଚନ୍ଦ୍ରଶେଖରଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଆମ ରାଜ୍ୟର ଗୁଣଗ୍ରାହୀ ସରକାର ପୁରୀସ୍ଥିତ ମହାବିଦ୍ୟାଳୟଟିକୁ 'ସାମନ୍ତ ଚନ୍ଦ୍ରଶେଖର କଲେଜ୍' ନାମରେ ନାମିତ କରିଥିଲେ ମଧ୍ୟ ତାଙ୍କ ପ୍ରତିଭାର ମୂଲ୍ୟାୟନ କଳ୍ପେ ଏ ଯାବତ୍ କୌଣସି ପ୍ରକାର ଉଲ୍ଲେଖନୀୟ କାର୍ଯ୍ୟାନୁଷ୍ଠାନ ଗୃହୀତ ହୋଇନାହିଁ । ତାଙ୍କ ଭଳି ଜଣେ ମହାମତି ବୈଜ୍ଞାନିକମାନଙ୍କ ପାଇଁ ମଧ୍ୟ ଆମେ ତାଙ୍କ ଜରିଆରେ ଅନ୍ତଃରାଷ୍ଟ୍ରୀୟ କ୍ଷେତ୍ରରେ ନିଜ ସୁସଂସ୍କୃତ ଜନ୍ମଭୂମିର ଡିଣ୍ଡିମ୍ ବଜାଇବାକୁ ଅସମର୍ଥ ହୋଇଛୁ । ଓଡ଼ିଶାର ଶିକ୍ଷା ସଂସ୍କୃତି ସଚେତନ ଯୁବସଂପ୍ରଦାୟ ବିଳମ୍ବରେ ହେଲେ ମଧ୍ୟ ଏଭଳି କାର୍ଯ୍ୟ ସାଧନ ପାଇଁ ଆଗଭର ହେବା ସର୍ବାଦୌ ବାଞ୍ଛନୀୟ । ସଂସ୍କୃତଭାଷାବିତ୍, ଗଣିତଜ୍ଞ; ଜ୍ୟୋତିର୍ବିଜ୍ଞାନୀ ଓ ଇଂରାଜୀ ଭାଷାରେ ସିଦ୍ଧହସ୍ତ ଲେଖକମାନଙ୍କ ସହଯୋଗରେ ସିଦ୍ଧାନ୍ତ ଦର୍ପଣର ଗୋଟିଏ ଇଂରାଜୀ ଟୀକା ପ୍ରଣୟନ କରାଗଲେ ଏପରି ମହତ୍ ଲକ୍ଷ୍ୟ ହାସଲ ହୋଇପାରିବ ।



Digitized by srujanika@gmail.com